# ଶ୍ରୀ ଅମୀରଚନ୍ଦ

## ସହିଦ ଭଗତ ସିଂ

ଭାଷାନ୍ତର

ଅଧ୍ୟାପକ ନୀଳମଣି ସାହୁ

(ଏହି ଲେଖାଟି ଭଗତ ସିଂ ''ଗୌତମ'' ଛଦ୍ମନାମରେ ଲେଖିଥିଲେ ।)

ଦିଲ୍ଲୀର ମିଶନ୍-ହାଇସ୍କୁଲରେ ମାଷ୍ଟର ଥିଲେ । ସେହି ସମୟରେ ସେ ସ୍ୱାମୀ ରାମତୀର୍ଥଙ୍କ ଭକ୍ତ ଥିଲେ, ପରେ ଯେତେବେଳେ ଲାଲା ହରଦୟାଲ ନିଜ ବିଚାରଧାରାର ପ୍ରଚାର କଲେ, ସେତେବେଳେ ତାଙ୍କ ସହ ଏକମତ ହୋଇ ତାଙ୍କ ବିଚାରଧାରାର ପ୍ରଚାରରେ ଜୁଟି ଗଲେ । ସେ ଉର୍ଦ୍ଦୁ ଓ ଇଂରାଜି ଭାଷାର ଜଣେ ଭଲ ଲେଖକ ଥିଲେ । ୧୯୦୮ ରେ ଯେତେବେଳେ ହରଦୟାଲ ଭାରତରୁ ଚାଲିଗଲେ, ସେତେବେଳେ ସେ ଦଳର ସମସ୍ତ ଭାର ତାଙ୍କୁ ହିଁ ସମର୍ପି ଦେଇ ଯାଇଥିଲେ ।

ସେ ଜଣେ ହସମୁହାଁ ତଥା ସ୍ୱାଧୀନତା-ପ୍ରେମୀ ମଣିଷ ଥିଲେ । ଗମାତରେ ସେ କହୁଥିଲେ ଯେ ଦିଲ୍ଲୀକୁ ଆସି କାହାକୁ ହେଲେ ବାନର ମାଷ୍ଟ୍ରଙ୍କ ଘର କେଉଁଠି ପଚାରିଲେ ମୋ ଘର ଠିକଣା ମିଳିଯିବ ।

ଦିଲ୍ଲୀ ଓ ଲାହୋରରେ ବୋମା ଫୋପାଡ଼ିବା ଲୋକଙ୍କ ପତା ମିଳିଲାନି । ଚାରିଆଡ଼େ ତଲାସି ଜାରି ରହିଥିଲା । କଲିକତାର ରାଜାବଜାରରେ ଗୋଟିଏ କୋଠାରେ ତଲାସି ଚାଲିଥିବା ବେଳେ ଅବଧବିହାରୀଙ୍କ ପତା ମିଳିଗଲା । ସେ ସେହି ସମୟରେ ଅମୀରଚନ୍ଦଙ୍କ ଘରେ ହିଁ ରହୁଥିଲେ । ସନ୍ଦେହ ତ ଆଗରୁ ହିଁ ଥିଲା । ହେଉ, ତଲାସି ନିଆଗଲା ଓ ଘରୁ ବୋମାର ଟୋପିଟିଏ ମିଳିଗଲା । ଏହି ତଲାସି ବେଳେ ଲାହୋରରୁ ଲେଖା ହୋଇଥିବା ଚିଠିଟିଏ ବି ମିଳିଲା, ଯହିଁରେ M. S. (ଏମ୍. ଏସ୍.) ରୂପେ ସ୍ୱାକ୍ଷର ରହିଥିଲା । ପଚରା ଉଚରାରୁ ଜଣା ପଡ଼ିଲା ଯେ ତାହା ଦିନାନାଥଙ୍କ ଲେଖା ଥିଲା । ବହୁତ ଦୀନାନାଥଙ୍କୁ ଧରି ନିଆଗଲା । ହେଲେ ପରେ ଅସଲ ଦୀନାନାଥଙ୍କ ପତା ବି ମିଳିଗଲା । ତାଙ୍କ ପାଇଁ ତଲାସି ଚାଲିଲା ଓ ଗିରଫ ହେବା ପରେ ସେ ସାରା ଭେଦ ଖୋଲି ଦେଲେ ।

ଅମୀରଚନ୍ଦଙ୍କ ଉପରେ Liberty leaflet (ମୁକ୍ତି ପ୍ରଚାରପତ୍ର) ଲେଖିବା ଅପରାଧ ଲଗାଗଲା । ଏବଂ ବିଶେଷକରି ନିମ୍ନଲିଖିତ ବିଷୟକୁ ନିତାନ୍ତ ଆପତ୍ତିଜନକ ବୋଲି ବିଚାର କରାଗଲା:

"We are so many that we can seize and snatch from them their cannons." ("ଆମେ ସଂଖ୍ୟାରେ ଏତେ ଯେ ସେମାନଙ୍କର ତୋପଗୁଡ଼ିକୁ ଭିଡ଼ି ଛଡ଼େଇ ଆମେ ନେଇ ଆସି ପାରିବା ।")

ଏବଂ

"Reforms will not do. Revolution and general massacre of all the foreigners, especially the English, will and alone can serve our purpose."

(''ସଂସ୍କାର କୌଣସି କାମର ନୁହେଁ । କେବଳ ବିପ୍ଲବ ଓ ବିଦେଶୀମାନଙ୍କ, ବିଶେଷତଃ ଇଂରେଜମାନଙ୍କ, ଗଣହତ୍ୟା ହିଁ ଆମର ଉଦ୍ଦେଶ୍ୟ ସାଧନ କରିବ ।'')

ଅଦାଲତରେ ତାଙ୍କୁ ଫାଶୀଦଣ୍ଡ ଶୁଣେଇ ଦେବା ପରେ ସେ ହସି ଦେଲେ । ସେତେବେଳକୁ ତାଙ୍କୁ ପଚାଶ ବର୍ଷ ହୋଇଥିଲା । ଦିଲ୍ଲୀର ବହୁତ ବଡ଼ ବଡ଼ ଲୋକ ସଫାଇ ସାକ୍ଷ୍ୟ ଦେଇ ତାଙ୍କର ଉଚ୍ଚ ଚରିତ୍ରର ବହୁତ ପ୍ରଶଂସା କରିଥିଲେ । ତାହାରି ଉପରେ ମନ୍ତବ୍ୟ ଦେଇ ଅପିଲ୍‌ର ଫଇସଲାରେ ଜଜ୍ ଲେଖିଥିଲେ:

"It must be borne in mind that 'patriots' of Amir Chand's type are often, except in regard to the monomania possessing them estimable men, and of blameless private life." (''ଏହା ମନେ ରଖିବା ଆବଶ୍ୟକ ଯେ ଅମିର ଚାନ୍ଦଙ୍କ ଭଳିଆ ''ଦେଶଭକ୍ତମାନେ', ସେମାନଙ୍କର ଏକଦୃଷ୍ଟିଆ ବାତୁଳତାକୁ ବାଦ୍ ଦେଲେ, ପ୍ରାୟ ସମସ୍ତେ ମର୍ଯ୍ୟାଦାବନ୍ତ ଓ ସେମାନଙ୍କର ବ୍ୟକ୍ତିଗତ ଜୀବନ ଅନିନ୍ଦନୀୟ ।'')

ଅଦାଲତରେ ତାଙ୍କର ହିଁ ଦତ୍ତପୁତ୍ର ସୁଲ୍‌ତାନଚନ୍ଦ୍ ସରକାରୀ ସାକ୍ଷୀ ହୋଇ ତାଙ୍କରି ବିରୁଦ୍ଧରେ ସାକ୍ଷ୍ୟ ଦେଇଥିଲା । କେହି ଜଣେ ଠିକ୍ କହିଛନ୍ତି:

ବାଗ୍‌ୱାଁ ନେ ଆଗ୍ ଦୀ ଜବ୍ ଆଶିୟାନେ କୋ ମେରେ ।
ଜିନ୍ ପୈ ତକିଆ ଥା ଓହୀ ପତ୍ତେ ହୱା ଦେନେ ଲଗେ । ।
(ଆହା! କେଡ଼େ କଥା! ମାଳି ଯେବେ ମୋ ନୀଡ଼ରେ ଲଗେଇଲା ନିଆଁ ।
ତକିଆ ତଳର ପତ୍ର ହିଁ ତ ହାବା ଦେଇ ଉଡ଼େଇଲା ଧୂଆଁ । ।)

ସେଦିନ ମାଷ୍ଟର ଅମୀରଚନ୍ଦ ବି ଆଉ ସମ୍ଭାଳି ପାରିଲେନି । କୋର୍ଟରେ ହିଁ ତାଙ୍କ ଆଖିରୁ ଲୁହ ଝରଝର ବହିଗଲା । ମନୁଷ୍ୟ ସବୁ କିଛି ସହି ପାରେ, ହେଲେ ନିଜ ପ୍ରିୟଜନଙ୍କ — ଯେଉଁମାନଙ୍କୁ ହୃଦୟରେ ସବୁଠୁଁ ଉଚ୍ଚ ସ୍ଥାନ ଦିଆ ଯାଇଥାଏ, ସେମାନଙ୍କର — ବିଶ୍ୱାସଘାତକତା ସହନ କରିବା ଅସମ୍ଭବ । ମାଷ୍ଟର ଜୀଙ୍କ ଭଳି ଗମ୍ଭୀର ଓ ଦୃଢ଼ ଲୋକ ବି ଆଜି ନିଜର ଲୁହକୁ ଅଟକେଇ ରଖି ପାରିଲେନି । ତାଙ୍କର ସେହି ଦତ୍ତପୁତ୍ର ଆଜି ବି ଜୀବିତ ଅଛି ଓ ସୁଖରେ ଜୀବନ ବିତଉଛି ।

ମାଷ୍ଟର ଅମୀରଚନ୍ଦ ପୁଅର ବିଶ୍ୱାସଘାତକତା ପାଇଁ ଲୁହ ଝରେଇ ଥିଲେ ବି, ଯେତେବେଳେ ମୃତ୍ୟୁଦଣ୍ଡ ଶୁଣିଲେ ସେ ଏକବାରେ ଆନନ୍ଦିତ ହୋଇଗଲେ । ସେ ସଂସାରର ସାଧାରଣ ଲୋକମାନଙ୍କଠୁଁ ବହୁତ ମହାନ ଥିଲେ । ତାହାର ବିଶେଷ ପରିଚୟ ସେ ହସି ହସି ଫାଶୀ ଦଉଡ଼ିକୁ ଗଳାରେ ପକେଇବା ଘଟଣାରୁ ମିଳେ । ଆଜି ସେ ସଂସାରରେ ନାହାଁନ୍ତି, ହେଲେ ତାଙ୍କର ନାମ ରହିଛି, ସୁକୃତି ରହିଛି, ତାଙ୍କର ବିପ୍ଳବ ରହିଛି । ଯଦି କେବେ ଦେଶ ସ୍ୱାଧୀନ ହେବ, ତେବେ ସେହି ମହାପୁରୁଷଙ୍କୁ ଲୋକେ ଆଦର କରି ପାରିବେ ।

e-mail: neelamanisahu@rediffmail.com

୯୪୩୭୫୧୫୭୮୨